# ଏଣ୍ଡି



## ପ୍ରଥମଭାଗ

ପ୍ରାଇମେରି ସ୍କୁଲର ୨ୟ ଓ ୩ୟ ଶ୍ରେଣୀର
ଛାତ୍ରମାନଙ୍କ ନିମନ୍ତେ ।

Price Rs. 0-2-0 ମୂଲ୍ୟ ଠ ୦ ୶

# ଏଣ୍ଟ୍ରି

## ପ୍ରଥମ ଭାଗ



ରାୟସାହେବ ଶ୍ରୀ ଭଗବତୀଚରଣ ପଟ୍ଟନାୟକଙ୍କଦ୍ୱାରା
ପ୍ରଣୀତ ଓ ପ୍ରକାଶିତ

ପ୍ରଥମ ସଂସ୍କରଣ

Printed by S. C. De
The Cuttack Printing Co. Ld.
CUTTACK.
1929

# FOREWORD

I have great pleasure in writing this foreword for the book designated **Eri** by my friend Rai Sahib Bhikari Charan Pattanayak.

I have taken great care to go through the work with some minuteness and I find that the plan and the matter of the book would be in conformity with the new educational principles and the right spirit of elementary teaching in our primary schools for which the department has brought out a new syllabus. I may add that during the course of my inspection as also at conferences of primary teachers and inspecting officers, suggestions for educational active work have been all incorporated by Rai Sahib. I consider the book to be of great help to teachers who would try to do in their schools in the form of hand-work and observation training, in the teaching of Eri worm.

B. Mukharji
Offg. Inspector of Schools.
Orissa Division.
30-4-29

ଓଡ଼ିଶାବିଭାଗର ସ୍କୁଲ ଇନ୍‌ସ୍‌ପେକ୍ଟର ଶ୍ରୀଯୁକ୍ତ ବି. ମୁଖର୍ଜି ଏମ୍. ଏ. ବି. ଏଲ୍. ( କଲିକତା ) ଏମ୍. ଏ. ଏଡୁକେଶନ୍ ( ଲିଡ଼ସ୍ ) ଙ୍କର ଉପରଲିଖିତ ଇଂରାଜୀ ସୂଚନାରୁ ଅନୁବାଦ ।

# ସୂଚନା

ମୋର ବନ୍ଧୁ ବାବୁସାହେବ ଭଗବାନଚରଣ ପଟ୍ଟନାୟକଙ୍କ କୃତ 'ଏଣ୍ଡି' ପୁସ୍ତକର ସୂଚନା ଲେଖିବାରେ ମୁଁ ବିଶେଷ ଆନନ୍ଦିତ ହୋଇଅଛି ।

ମୁଁ ପୁସ୍ତକର କେତେକ ଅଂଶ ପୁଙ୍ଖାନୁପୁଙ୍ଖରୂପେ ଓ ଯତ୍ନ ସହକାରେ ଦେଖିଅଛି । ଏହା ପ୍ରଣୟନ କରିବାରେ ଗ୍ରନ୍ଥକାର ନୂତନ ଶିକ୍ଷାଦାନ ପଦ୍ଧତି ଅନୁସରଣ କରିଅଛନ୍ତି; ବିଶେଷତଃ ପ୍ରାଇମେରୀ ସ୍କୁଲମାନଙ୍କ ନିମନ୍ତେ ଶିକ୍ଷାବିଭାଗ ଯେଉଁ ନୂତନ ସିଲବସ୍ ପ୍ରସ୍ତୁତ କରିଅଛନ୍ତି ଏହା ତଦନୁଯାୟୀ ସମ୍ୟକ୍‌ଭାବରେ ପ୍ରସ୍ତୁତ ହୋଇଅଛି । ପ୍ରାଇମେରୀ ସ୍କୁଲପରିଦର୍ଶନ ସମୟରେ ଓ ପ୍ରାଇମେରୀ ଶିକ୍ଷକମାନଙ୍କର ସମ୍ମିଳନୀରେ ଶିକ୍ଷାସଂକ୍ରାନ୍ତ କାର୍ଯ୍ୟ-ତତ୍ପରତା ବିଷୟରେ ଯେଉଁ ମନ୍ତବ୍ୟମାନ ପ୍ରକାଶ କରିଥିଲି ତାହା ବାବୁସାହେବ ତାହାଙ୍କର ପୁସ୍ତକରେ ବିଶେଷଭାବରେ ଆଲୋଚନାକରି କାର୍ଯ୍ୟର ମାର୍ଗ ନିର୍ଦ୍ଦେଶ କରିଦେଇଅଛନ୍ତି ।

ଯେଉଁ ଶିକ୍ଷକମାନେ ସେମାନଙ୍କର ସ୍କୁଲମାନଙ୍କରେ ଏଣ୍ଡି ପୋକ ସମ୍ବନ୍ଧରେ ଶିକ୍ଷାଦେବା ସମୟରେ ହସ୍ତକୃତ କର୍ମ ଓ ପର୍ଯ୍ୟବେକ୍ଷଣ ପ୍ରତି ପ୍ରୟାସୀ ଅଟନ୍ତି ସେମାନଙ୍କ ପକ୍ଷେ ମୋ ମତରେ ଏହି ପୁସ୍ତକ ବିଶେଷ-ଭାବରେ ସାହାଯ୍ୟ କରିବ ।



# ଶିକ୍ଷକଙ୍କପ୍ରତି ଉପଦେଶ -

ଶିକ୍ଷକ ମହାଶୟ ସ୍ମରଣ ରଖିବେ ଏହି ପୁସ୍ତକଟି ଛାତ୍ରମାନଙ୍କ ନିମନ୍ତେ ଲେଖା ହୋଇନାହିଁ । ଏହା ଶିକ୍ଷକମାନଙ୍କ ନିମନ୍ତେ ଲେଖାଯାଇ ଅଛି । ଶିକ୍ଷକ ପାଠ କରି ଛାତ୍ରମାନଙ୍କୁ ଏଥିର ସମସ୍ତ ବିଷୟଗୁଡ଼ିକ କାର୍ଯ୍ୟଦ୍ୱାରା ଶିକ୍ଷା ଦେବେ, ବହିରୁ କେତେକ ଅଂଶ ଯେପରି ଛାତ୍ରମାନେ କଣ୍ଠସ୍ଥ ନ କରନ୍ତି ବା ପୁସ୍ତକ ପାଠକରି କେତେକ ପ୍ରଶ୍ନର ଉତ୍ତର ଦେବାକୁ ପ୍ରସ୍ତୁତ ନ ହୁଅନ୍ତି ତତ୍ପ୍ରତି ବରାବର ଦୃଷ୍ଟି ରଖିବେ । ତେବେ ସେମାନେ ଶିଖିବେ କିପରି ? ସେମାନଙ୍କୁ ଶିକ୍ଷା ଦେବ ପର୍ଯ୍ୟବେକ୍ଷଣଦ୍ୱାରା ଏବଂ ପ୍ରକୃତ କାର୍ଯ୍ୟଦ୍ୱାରା । ଭିନ୍ନଭିନ୍ନ ଶ୍ରେଣୀ ନିମନ୍ତେ ଭିନ୍ନ ୨ କାର୍ଯ୍ୟର ବିଭାଗ କରାଯାଇଅଛି । ଶିକ୍ଷକ ସେହି କାର୍ଯ୍ୟଗୁଡ଼ିକ ଛାତ୍ରମାନଙ୍କଦ୍ୱାରା ଏପରି ଭାବରେ କରାଇନେବେ ଯେ ତହିଁରୁ ଛାତ୍ରମାନେ ଏଣ୍ଡି ପୋକଙ୍କର ଆହାର କେତେକଗୁଡ଼ିଏ ବୃକ୍ଷ ଓ ଲତା ସମ୍ବନ୍ଧେ ଅନେକ କଥା ବୁଝି- ପାରିବେ ଏବଂ ଏଣ୍ଡି ପୋକ ପୋଷିବା ପ୍ରଣାଳୀ ଓ ସେମାନଙ୍କର ସ୍ୱଭାବ ବ୍ୟବହାର ପ୍ରଭୃତି ଯାହା କିଛି ଶିଖିବାର ଆବଶ୍ୟକ ତାହା ସମସ୍ତ ନିଜେ ନିଜେ ଆପଣାର କାର୍ଯ୍ୟରୁ ଶିଖିପାରିବେ । ସେଥି ନିମନ୍ତେ ଦୁଇଗୋଟି ମୁଖ୍ୟ ଉପାୟର ସୂଚନା କରାଯାଇଅଛି; ଯଥା—

୧ । ଛାତ୍ରମାନଙ୍କ ହାତରେ ସମସ୍ତ କାର୍ଯ୍ୟ କରାଇବା

୨ । ଦ୍ୱିତୀୟଶ୍ରେଣୀ ପର ଅନ୍ୟ ଶ୍ରେଣୀର ଛାତ୍ରମାନଙ୍କୁ ଡାଇରି ରଖିବାକୁ ଶିକ୍ଷା ଦେବା ।

ଏହାକୁ କାର୍ଯ୍ୟରେ ପରିଣତ କରିବା କାରଣ ଯେଉଁ କାର୍ଯ୍ୟନିର୍ଘଣ୍ଟ ପ୍ରସ୍ତୁତ ହୋଇଅଛି ତାହା ମଧ୍ୟ ଦିଆଗଲା ।

କାର୍ଯ୍ୟ କପଟ କରିବାକୁ ହେବ ତହିଁର ଗୋଟିଏ ଆଦର୍ଶପାଠ ଟୀକା ମଧ୍ୟ ଦିଆଯାଇଅଛି, ସେହି ଆଦର୍ଶରେ ଶିକ୍ଷକ ଅନ୍ୟ ସମସ୍ତ କାର୍ଯ୍ୟ କରାଇ ନେବେ ।

ପ୍ରତ୍ୟେକ ଛାତ୍ରକୁ ଖଣ୍ଡିଏ ଲେଖାଏଁ ଖାତା ରଖିବାକୁ ଉପଦେଶ ଦେବେ । ଛାତ୍ର ଯେଉଁ ଦିନ ପୋକଙ୍କର ଯେଉଁ ଅବସ୍ଥା ଦେଖିବ ଓ ଯେଉଁ ଦିନ ଯେଉଁ କାର୍ଯ୍ୟ କରିବ ଓ ଯେତେବେଳେ ଯେଉଁ ପରିମାଣରେ ପତ୍ର ଖାଇବାକୁ ଦେବ ତାହା ସମସ୍ତ ସେହି ଖାତା ଖଣ୍ଡିକରେ ଲେଖିବାକୁ ଶିଖାଦେବ । ଛାତ୍ର ପ୍ରତିଦିନ ଯାହା ଦେଖୁଥିବ ତାହା ଯେବେ ନିଜ ଖାତାରେ ଲେଖିପାରିବ ତାହା ହେଲେ ଛାତ୍ରଟି ନିଜର ନୋଟ ବହିରେ ଏଣ୍ଡି ଚାଷ ସମ୍ବନ୍ଧେ ଏ ପୁସ୍ତକରେ ଯାହା କିଛି ଅଛି ତାହା ସମସ୍ତ ଆପଣାର ଭାଷାରେ ନୋଟ କରିପାରିବ ଏବଂ ତାହାର ନୋଟ ଖଣ୍ଡିକ ଖଣ୍ଡିଏ ତାହାର ନିଜର ଏଣ୍ଡି ଚାଷ ପୁସ୍ତକ ହୋଇଯିବ । ଆବଶ୍ୟକ ହେଲେ ସେ ସେହି ନୋଟରୁ ଯେତେ ସାହାଯ୍ୟ ପାଇପାରିବ ଅନ୍ୟ କୌଣସି ପୁସ୍ତକରୁ ସେପରି ସାହାଯ୍ୟ ପାଇପାରିବ ନାହିଁ ।

କାର୍ଯ୍ୟ କରାଇବା ସମ୍ବନ୍ଧେ ମଧ୍ୟ ଶିକ୍ଷକ ସ୍ମରଣ ରଖିବେ ଯେ ଛାତ୍ର-ମାନଙ୍କୁ କେବଳ କାର୍ଯ୍ୟର ବରାଦ ଦେଇ ସେମାନଙ୍କ ହାତରେ କାର୍ଯ୍ୟ କରାଇନେବେ । ସେହି କାର୍ଯ୍ୟକୁ ତାଙ୍କର ଡାଇରିରେ ଲେଖାଇ ଦେବେ । କିନ୍ତୁ ପୁସ୍ତକରୁ କିଛି ସେମାନଙ୍କୁ ପଢ଼ିବାକୁ କହିବେ ନାହିଁ, କି ପଢ଼ି ଶୁଣାଇବାର ମଧ୍ୟ ଆବଶ୍ୟକ ହେବନାହିଁ । ପୁସ୍ତକ ନିଜେ ପଢ଼ି ଯାହା ଆବଶ୍ୟକ ତାହା କରିବାକୁ ବରାଦ ଦେବେ ଓ କାର୍ଯ୍ୟ କରାଇ ନେବେ । ସେହି କାର୍ଯ୍ୟ ଗୁଡ଼ିକ ଯେପରି ଭାବରେ ଓ ଯେଉଁ ଫାରମରେ ଡାଇରିରେ ଲେଖିବାକୁ ହେବ ତହିଁର ଆଦର୍ଶ ଫାରମ ମଧ୍ୟ ଏହି ପୁସ୍ତ-କରେ ଦିଆଗଲା ।

ନିମ୍ନଲିଖିତ ପାଠ୍ୟତାଲିକା ଶିକ୍ଷାବିଭାଗଙ୍କଦ୍ୱାରା ଅନୁମୋଦିତ ହୋଇଥିବାରୁ ତାହା ପ୍ରକାଶ କରାଗଲା ।

୨ୟ ଶ୍ରେଣୀରେ—ଗଛଗଛ, କାଠଚମ୍ପା, ବନ୍ଧାକୋବି, କନ୍ଦମୂଳ, ଅମୃତଭଣ୍ଡା, କଦଳୀ, ଅମରଜଡ଼ା ପ୍ରଭୃତି ଗଛମାନଙ୍କର ପର୍ଯ୍ୟବେକ୍ଷଣ । ଏଣ୍ଡି ପୋକଙ୍କର ପ୍ରଧାନ ଖାଦ୍ୟ ଗବପତ୍ର ଏବଂ ଅଭାବ ପକ୍ଷେ କେବଳ ଜୀବନ ରକ୍ଷା ନିମନ୍ତେ ଅନ୍ୟ ଯେ ପତ୍ର ଦିଆଯାଏ ଏବଂ ଅମରଜଡ଼ା ଓ ଜଡ଼ାପତ୍ର ମଧ୍ୟରେ ପାର୍ଥକ୍ୟ ବୁଝାଇବା କାରଣ ସେହି ସମସ୍ତ ବୃକ୍ଷମାନଙ୍କର ବିଶେଷ ପର୍ଯ୍ୟବେକ୍ଷଣ ଆବଶ୍ୟକ । ଉଦ୍ଭିଦ ସମ୍ବନ୍ଧେ କେତେକ ସାଧାରଣ କଥାପରି ଏହି ବୃକ୍ଷମାନଙ୍କ ବିଷୟ ଏହି ପୁସ୍ତକରେ ଦିଆଯାଇଅଛି ।

୩ୟ ଶ୍ରେଣୀରେ—ରେସମ, ଏଣ୍ଡି ପାଟ, ଏଣ୍ଡି ପୋକ, ଏଣ୍ଡି ପୋକଙ୍କର ଆହାର, ଏଣ୍ଡି ପୋକ ପୋଷିବାର ଉପକରଣ, ଏଣ୍ଡି ପୋକ ପୋଷିବାର ସ୍ଥାନ ବିଷୟମାନ ଶିକ୍ଷା ଦିଆଯିବ ।

୪ର୍ଥ ଶ୍ରେଣୀରେ—ପୋକ ପୋଷିବାର ନିୟମ, ପୋକ ଖୋଳପା ଛାଡ଼ିବା ବିଷୟ, ପୋକମାନଙ୍କର ବର୍ଣ୍ଣ ପରିବର୍ତ୍ତନ, ପୋକଙ୍କର ଆକାର ବୃଦ୍ଧି, ପୋକ ପାକଳ ହେବା ଅର୍ଥାତ୍ କୋଷା ବାନ୍ଧିବାର ଉପଯୁକ୍ତ ହେବା ବିଷୟ, ଋତୁର ଫଳ ଅର୍ଥାତ୍ କେଉଁ ଋତୁରେ ପୋକ ବଳିଷ୍ଠ ହୋଇ ବଢ଼ନ୍ତି ଏବଂ କେଉଁ ଋତୁରେ ମରିଯାନ୍ତି ତଦ୍ ବିଷୟ ଏବଂ ଏଣ୍ଡି ପୋକଙ୍କର ଶତ୍ରୁ ବିଷୟ ଗୁଡ଼ିକ ଶିକ୍ଷା ଦିଆଯିବ ।

।

୫ମ ଶ୍ରେଣୀରେ—ଏଣ୍ଡି ପୋକଙ୍କର ରୋଗ, କୋଷା ପାଚିଆ, ବର୍ଣ୍ଣ ପରିବର୍ତ୍ତନ, ଓଜନ, ପ୍ରଜାପତି, ଅଣ୍ଡା, ଅଣ୍ଡା ଫୁଟିବା କଥା, ଏବଂ ଏଣ୍ଡି ପୋକଙ୍କର ଜୀବନକାଳ ସମ୍ବନ୍ଧେ ଶିକ୍ଷା ଦିଆଯିବ ।

୬ଷ୍ଠ ଶ୍ରେଣୀରେ—କୋଷା ସିଦ୍ଧ କରିବା ନିୟମ, ସୂତା କାଟା, ଏଣ୍ଡି ପାଟର ଲାଭ, ପୋକ ବୃଦ୍ଧି ସଙ୍ଗେ ଗଛପତ୍ରର ବୃଦ୍ଧି ବିଷୟ ଶିକ୍ଷା ଦିଆଯିବ ।



# ଆଦର୍ଶପାଠ ଟୀକା

## ଗବଗଛ

ଉପକରଣ :—ଗବଡାଳ, ଗବପତ୍ର, ଗବପେଣ୍ଡା (ଫଳ ସହିତ), ଅମୃତଭଣ୍ଡା ପତ୍ର, ଅମୃତଭଣ୍ଡା ଫୁଲ ଓ ଫଳ ।

| ବିଷୟ | ପଦ୍ଧତି |
|---|---|
| ଗବଗଛ ବଡ ହେଲେ ଫୁ: ୪।୧୫ ଟ ଉଚ୍ଚ ହୁଏ । ଗଛଟି ଶକ୍ତ ତେଣୁ ଅନ୍ୟ ଗଛର ସାହାଯ୍ୟ ନ ନେଇ ଠିଆ ହୋଇପାରେ । ଗଛର କାଣ୍ଡ ଧଳା ଓ ଖସ୍‌ଖସିଆ । ଗଛରେ ଅନେକ ଗୁଡ଼ାଏ ଡାଳ ଥାଏ ।<br>ଅମୃତଭଣ୍ଡା ଗଛ ବଡ ହେଲେ ଫୁ ୨୦।୨୫ ଟ ପର୍ଯ୍ୟନ୍ତ ଉଚ୍ଚ ହୁଏ । ଗଛଟି ମଠକା ତେଣୁ ଭାରୀ ପବନରେ ଭାଙ୍ଗିପଡ଼େ । ଗଛର କାଣ୍ଡ ଧଳା ଓ ଖସ୍‌ଖସିଆ । ଏ ଗଛର ଡାଳ ଦେଖାଯାଏ ନାହିଁ । | ଛାତ୍ରମାନଙ୍କୁ ବାହାରକୁ ନେଇ ଶିକ୍ଷା ଦିଆଯିବ ।<br>ପର୍ଯ୍ୟବେକ୍ଷଣ—ଏହା ଅତ୍ୟାବଶ୍ୟକ ବୋଲି ମନେ କରିବାକୁ ହେବ ।<br>ଛାତ୍ରମାନେ ସ୍କୁଲ ହତା ମଧ୍ୟରେ ଥିବା ଗବଗଛ ନିକଟକୁ ଯାଇ ପର୍ଯ୍ୟବେକ୍ଷଣ କରିବେ କିମ୍ବା ଶିକ୍ଷକ ଗବପତ୍ର ଇତ୍ୟାଦି ଆଣି ଶିକ୍ଷାଦେବେ ଓ ଛାତ୍ରମାନଙ୍କୁ ତାହା ପର୍ଯ୍ୟବେକ୍ଷଣ କରିବା ନିମନ୍ତେ ଉତ୍ସାହିତ କରାଇବେ ।<br>ଛାତ୍ରମାନଙ୍କଦ୍ୱାରା (କ) ଗବପତ୍ର (ଖ) କଅଁଳିଆ ପତ୍ର (ଗ) ଗବଡାଳ ଇତ୍ୟାଦି ଗବଗଛର ପ୍ରଧାନ ଅଂଶ ଗୁଡିକର ଯଥା ସମ୍ଭବ ଅଙ୍କନ ।<br>ପର୍ଯ୍ୟବେକ୍ଷଣ ଓ ଅଙ୍କନ ହେବାପରେ ଶିକ୍ଷକ ଛାତ୍ରମାନଙ୍କର ଜ୍ଞାନ ପରୀକ୍ଷା କରିବା ଉଦ୍ଦେଶ୍ୟରେ ନିମ୍ନଲିଖିତ ପ୍ରକାରର ପ୍ରଶ୍ନ ପଚାରିବେ:— |

| ବିଷୟ | ପଦ୍ଧତି |
|---|---|
| | (୧) ଗୋଟିଏ ଗଛପତ୍ର ଦେଖାଇ ଶିକ୍ଷକ ଛାତ୍ରମାନଙ୍କଠାରୁ ପତ୍ରର ଆକାର ପ୍ରଭୃତି ବିଷୟର ଉତ୍ତର ଆଦାୟ କରିବେ । |
| | (୨) ଗଛପତ୍ର ଓ ଅମୃତଭଣ୍ଡା ପତ୍ରର ସାଦୃଶ୍ୟ ଓ ପାର୍ଥକ୍ୟ ସମ୍ବନ୍ଧରେ ପ୍ରଶ୍ନ କରି ଉତ୍ତର ଆଦାୟ କରିବେ । |
| | (୩) ଗଛପତ୍ରରେ ଲାଗିଥିବା ନଳ ଓ ଅମୃତଭଣ୍ଡା ପତ୍ରରେ ଲାଗିଥିବା ନଳର ସାଦୃଶ୍ୟ ଓ ପାର୍ଥକ୍ୟ ସମ୍ବନ୍ଧରେ ପ୍ରଶ୍ନକରି ଉତ୍ତର ଆଦାୟ କରିବେ । |
| | ଶିକ୍ଷକ ଛାତ୍ରମାନଙ୍କୁ କଳାପଟାରେ ନିମ୍ନଲିଖିତ ଉପାୟରେ କାର୍ଯ୍ୟ କରାଇବେ ।— |
| | (୧) ଛାତ୍ରମାନଙ୍କୁ ଗଛପତ୍ର, ଡାଳ, ପେଣ୍ଡା ଓ ଫଳ ଅଙ୍କନ କରିବାକୁ କହିବେ । |
| | (୨) ଗଛପତ୍ର ଓ ଅମୃତଭଣ୍ଡା ପତ୍ରର ସାଦୃଶ୍ୟ ଓ ପାର୍ଥକ୍ୟ ଚିତ୍ରଦ୍ୱାରା ବୁଝାଇବାକୁ କହିବେ । |

ଉଲ୍ଲିଖିତ କ୍ରମାନୁଯାୟୀ ଅନ୍ୟାନ୍ୟ ପାଠ ଗୁଡିକ ମଧ୍ୟ ଆଲୋଚନା କରିବାକୁ ହେବ ।

ପର୍ଯ୍ୟବେକ୍ଷଣ ନୋଟ୍ ବହି ଫାରମର ନମୁନା :--

| ତାରିଖ | ବିଷୟ | ପର୍ଯ୍ୟବେକ୍ଷଣ | ଶିକ୍ଷକଙ୍କ ସ୍ୱାକ୍ଷର |
| --- | --- | --- | --- |
| | | | |

# ଏକ୍ତି

ପ୍ରଥମ ଅଧ୍ୟାୟ—ଦ୍ୱିତୀୟ ଶ୍ରେଣୀ

## (କ) ଗଛ

ବଗିଚାରେ ବା ଗ୍ରାମରେ ବୁଲିଥିଲେ, ଅନେକ ପ୍ରକାର ଗଛ ଦେଖିପାରିବ । ଘରୁ ବାହାରିଲେ ନାନାପ୍ରକାର ଘାସଗଛ, ବଗିଚାରେ ଅନେକ ପ୍ରକାର ଫୁଲ ଓ ଫଳଗଛ ଅଛି । ଗ୍ରାମରେ ବର ଗଛ ଆମ୍ବ-ଗଛ, ନଡ଼ିଆ ଗଛ, ପଣସ ଗଛ ପ୍ରଭୃତି ଯେତେପ୍ରକାର ଗଛ ଦେଖୁଅଛ ସେ ସମସ୍ତଙ୍କୁ ଉଦ୍ଭିଦ କହନ୍ତି । ସେମାନେ ମାଟିକୁ ଭେଦକରି ଉଠନ୍ତି ତେଣୁ ସେମାନେ ଉଦ୍ଭିଦ । ସେମାନଙ୍କର ଜୀବନ ଅଛି, ସେମାନେ ଜନ୍ମ ହୁଅନ୍ତି, ଆହାର ଖାନ୍ତି, ବଢ଼ନ୍ତି ଏବଂ ମରନ୍ତି ।

ଉଦ୍ଭିଦ ତିନଗୋଟି ଶ୍ରେଣୀରେ ବିଭକ୍ତ; ଯଥା:—ବୃକ୍ଷ, ଲତା ଓ ତୃଣ ।

ସେମାନଙ୍କର ଆହାର ମାଟିରେ ଏବଂ ପବନରେ ଥାଏ । ମୂଳଟି ମାଟିଭିତରକୁ ଯାଇ ମାଟିରୁ ଆହାର ଟାଣେ ଏବଂ ପତ୍ର ପବନରୁ ଆହାର ଟାଣେ ଓ ମଧ୍ୟ ଚେର ଯେଉଁ ରସ ମାଟିରୁ ଟାଣିନିଏ, ତାହା କାଣ୍ଡ ଓ ଡାଳଦ୍ୱାରା ପତ୍ରକୁ ଯାଏ ସେଠାରେ ଆଲୋକଦ୍ୱାରା ପରିପାକ ହୋଇ ଗଛକୁ ବଢ଼ାଏ ।

ପ୍ରଶ୍ନ

୧ । ଉଦ୍ଭିଦ କାହାକୁ କହନ୍ତି ?

୨ । ଯେତେ ପ୍ରକାର ଉଦ୍ଭିଦ ଦେଖିଅଛ ସେମାନଙ୍କ ମଧ୍ୟରୁ ୩୦ ଗୋଟି ଉଦ୍ଭିଦର ନାମ କହ । ୫ ଗୋଟି ବୃକ୍ଷର ନାମ ୫ ଗୋଟି ଲତାର ନାମ ଏବଂ ୫ ଗୋଟି ତୃଣର ନାମ କହ ।

୩ । ବରଗଛ, ପୋଇଚଛ, ଟ୍ରିକାଲିଙ୍ଗୁଠିଆ ଶାଗ, ଏ ଭିନ୍ନ ଉଦ୍ଭିଦଙ୍କ ମଧ୍ୟରେ ପ୍ରଭେଦ କଅଣ ?

୪ । ଚେରଗୁଡ଼ିକ କାଟିଦେଲେ ଗଛଟି ବଞ୍ଚିବ କି ନାହିଁ ? ଯେବେ ନ ବଞ୍ଚେ କାହିଁକି ବଞ୍ଚିବନାହିଁ ?

## (ଗ) ଗବଗଛ

ଏଣ୍ଡି ପୋକଙ୍କର ପ୍ରଧାନ ଆହାର ଗବପତ୍ର ।

ଗବଗଛ ସମସ୍ତେ ଦେଖିଅଛ । ଅପରପାର୍ଶ୍ୱରେ ଗୋଟିଏ ଗବଗଛର ଛବି ଦିଆଗଲା । ପ୍ରାୟ ପ୍ରତି ଗ୍ରାମରେ ଗବଗଛ ଅଛି । ଏହାକୁ କେହି 'ଗବ' କହନ୍ତି, କେହି 'ଜଡ଼ା' କହନ୍ତି ଓ ପୁରୀ ବାଣପୁର ଅଞ୍ଚଳରେ 'କାଲ' କହନ୍ତି ।

ଏହି ଗବ ସାଧାରଣତଃ ଦୁଇ ପ୍ରକାର; ବଡ଼ଗବ ବା ବାଡଗବ ଏବଂ ବିଲଗବ ବା ଛୋଟଗବ ।

ବାଡରେ ଯେଉଁ ଗବ ହୁଏ ତାହାର ଗଛ ଖୁବ୍ ବଡ଼ ବଡ଼ ହୁଏ, କେହି କେହି ୧୪।୧୫ ଫୁଟ ଉଚ୍ଚ ହୁଏ ଏବଂ ସେମାନଙ୍କର ଶାଖା ପ୍ରଶାଖା ଯଥେଷ୍ଟ ହୁଏ ।

ବିଲରେ ଯେଉଁ ଗବବୃକ୍ଷ ହୁଏ ସେ ଗୁଡ଼ିକ ସାଧାରଣତଃ ଛୋଟ-ଗବ, ସେ ଗଛ ୫।୬ ଫୁଟ ପର୍ଯ୍ୟନ୍ତ ଉଚ୍ଚ ହୁଏ । ଶାଖା ପ୍ରଶାଖା ବେଶୀ ହୁଏ ନାହିଁ । କୌଣସି କୌଣସି ସ୍ଥାନରେ ମାଟିର ବିଶେଷତ୍ୱ ଯୋଗୁଁ ଆଉ କିଛି ଅଧିକ ବଡ଼ ହୋଇଥାଏ ।

ବାଡଗବ ବା ବଡ଼ଗବ ବୈଶାଖ ବା ଜ୍ୟେଷ୍ଠ ମାସରେ ବର୍ଷାହେଲେ ଲଗାଯାଏ । ବିଲଗବ ଆଶ୍ୱିନ ବା କାର୍ତ୍ତିକମାସରେ ଲଗାହୁଏ । ବଡ଼ ଗବଗଛ ୪।୫ ବର୍ଷକାଳ ବଞ୍ଚିରହେ । ମାତ୍ର ଧାନ ଗବଗଛରେ

ଫଳହୋଇ ଚୈତ୍ର ବୈଶାଖ ବେଳକୁ ଫଳ ପାଚିଯାଏ, ଫଳ ପାଚିଗଲେ ଗଛ ମରିଯାଏ ।



ବାଡ଼ି ଗଛ ଅପେକ୍ଷା ବିଲ ଗଛ ମଞ୍ଜିରୁ ତେଲ ବେଶି ବାହାରେ । ନଈକୂଳର ଦୋରସା ମାଟିରେ ଗଛ ଭଲ ହୁଏ । ପୋଟାସ୍ ପଙ୍କ ଗଛ ବୃକ୍ଷର ଉତ୍କୃଷ୍ଟ ସାର, ଗୋବର ମଧ୍ୟ ଭଲ ସାର ।

ଜଡ଼ା ଗଛରେ ବେଶି ପରିଶ୍ରମ ନାହିଁ । ଗଛକର ଡେଙ୍ଗଗୁଡିକ ଭାଙ୍ଗିଦେବ । ୩ ଫୁଟ ଛଡ଼ାରେ ସିଆର କରି ହାତେ ଛଡ଼ାରେ ଯୋଡ଼ାଏ ଲେଖାଏଁ ମଞ୍ଜି ପୋତିଦେବ ।

ତିନି ଏକର ଜମି ସକାଶ ବାଲେଶ୍ୱରୀ ୨ ସେର ମଞ୍ଜି ଦରକାର ହେବ ।

ଗଛ ହେଲାପରେ କେବଳ ଥରେ ଦୁଇଥର ଘାସ ବାଛି ଦେବାକୁ ପଡ଼ିବ । ସିଆର ମଧ୍ୟରେ ଲଙ୍ଗଳ ଚଳାଇ ଦେଲେ ମଧ୍ୟ ଚଳିବ । ପାଣି ମଡ଼ାଇବାକୁ ହେବନାହିଁ କମ୍ବା ଆଉ କିଛି କରିବାକୁ ହେବନାହିଁ ।

ବାଡ଼ି ଗବ ବାଡ଼ ପାଖେ ପାଖେ ୨।୩ ହାତ ଅନ୍ତରରେ ବୁଦାଏ ବୁଦାଏ ପୋତିଦେଲେ ହେଲା । ମୂଳରୁ ଥରେ ଦୁଇଥର କେବଳ ଘାସ ବାଛିଦେବ । ଗଛ ବଡ଼ ହୋଇଗଲେ ଆଉ କିଛି କରିବାକୁ ହେବ-ନାହିଁ ।

ଏକ ଏକର ଜମିରୁ ୧୦ ମହଣ ଗବ ମିଳିପାରିବ ।

## (ଗ) ଗବପେଣ୍ଡା ଓ ଗବ

ଗବଗଛ ବା ଡାଳର ଅଗରେ ଗୋଟିଏ ଗୋଟିଏ ପେଣ୍ଡା ଧରେ । ପ୍ରତି ପେଣ୍ଡାରେ ଅନେକଗୁଡିଏ ଫଳ ଥାଏ । ଫଳ ଗୋଟିଏ ଭାଙ୍ଗିଦେଲେ ଦେଖିବ ତହିଁରେ ତିନୋଟି କୋଷା ଅଛି । ସାଧାରଣତଃ ଗବ ପାଚିଗଲେ ଫଳଗୁଡିକ ତୋଳି ଆଣି ତାକୁ କୁଟା ଘୋଡ଼ାଇ ଗୋଟିଏ କୋଣରେ ଜମାକରି ଦିଅନ୍ତି । ୭।୮ ଦିନରେ ଖୋସାଗୁଡ଼ିକ ପଚିଯାଏ । ତେତେ-ବେଳେ ତାକୁ ଖରାରେ ଶୁଖାଇ ଦିଅନ୍ତି; ଶୁଖିଗଲେ ଠେଙ୍ଗାରେ ବାଡ଼େଇ ଗବ ମଞ୍ଜି ବାହାର କରନ୍ତି

ଗୋଟିଏ ଗବଫଳ ଶିଶୁମାନଙ୍କୁ ଦେଖାଅ । ଫଳଟିର ଉପରେ ଗୋଟିଏ ନରମ ଖୋସା । ସେହି ଖୋସା ଉପରେ ଗୁଡିଏ କଣ୍ଟା ବାହାରିଅଛି, ମାତ୍ର

ତାହା ଠାଣ ନୁହେଁ । ଏହ ଗୋଟପାଞ୍ଚି ପଚଗଲେ ଭିତରେ ପେଉଁ କୋଷା ତିନୋଟି ଥାଏ ତହିଁର ପ୍ରତ୍ୟେକଟି ଦୁଇ ଫାଳରେ ବିଭକ୍ତ ଓ ଡକ୍କଣ । ଦୁଇଟି ଫାଳ ଲାଗି ଗୋଟିଏ କୋଷା ହୋଇଅଛି । ଶୁଖିଗଲେ ସେଇଟି ଫାଟିଯାଏ । ଖରାରେ ଶୁଖୁଥିବା ବେଳେ ଗୋଟିଏ ଗୋଟିଏ କୋଷା ଠକ୍ ଠକ୍ ଶବ୍ଦକରି ଫାଟେ । ଏହି କୋଷାଟି ମଧ୍ୟରେ ଗବ ମଞ୍ଜି ଥାଏ ଓ ଗବ ଛୁଡ଼ିକ ଦୂରରେ ପଡ଼େ ।

ଗବ ମଞ୍ଜିଟିର ଉପରଟି ପୁଣି ଗୋଟିଏ ବେଶ୍ ସୁନ୍ଦର ଡକ୍କଣ ଖୋଳପା, ସେଇଟି ଭାଙ୍ଗିଦେଲେ ତା ଭିତରୁ ପରିଷ୍କାର ଧୋବଲା ଗୋଟିଏ ଶସ ବାହାରିବ—ସେହି ଶସଟିରେ ତେଲ ଅଛି ।

ଗବକୁ ପ୍ରଥମେ କୁଟିଦେଇ ତାକୁ ରାନ୍ଧି ତେଲ ବାହାର କରନ୍ତି କେହି ଅବା ଘଣାରେ ପେଡି ତେଲ ବାହାର କରନ୍ତି ।

## (ଘ) ବାଇଗବା ଗଛ

ଆଉ ଗୋଟିଏ ଗଛ ଅଛି, ତାକୁ ବାଇଗବା କହନ୍ତି, ସେହି ଗଛକୁ କେହି କହନ୍ତି ଅମର ଜଡ଼ା, କେହି ଅବା କହନ୍ତି ବାଇଜଡ଼ା ବା ବାଇଆ ଗବ । ବାଲେଶ୍ୱର ଜିଲ୍ଲାର କେତେକ ସ୍ଥାନରେ ଜଡ଼ାକୁ କେବଳ ଜଡ଼ା କହନ୍ତି, ଗବ ଅର୍ଥରେ ସେହି ବାଇଆ ଗବକୁ ବୁଝନ୍ତି, ବାଇଗବାର ଷୀର ବଡ଼ କଟୁ, ସେଗୁଡ଼ିକର ପଟ ଏଣ୍ଡି ପୋକଙ୍କର ଆହାର ନୁହେଁ ।

ବାଇଗବା ଫଳର ଉପରିଭାଗ ଗବଫଳପରି ନୁହେଁ, ତାହା ଡକ୍କଣ । ଆକାର ମଧ୍ୟ ଗବଫଳ ଅପେକ୍ଷା ବଡ଼, ଫଳ ଭିତରେ ଗବଫଳ-ପରି ତିନୋଟି କୋଷାଥାଏ, ପ୍ରତି କୋଷା ମଧ୍ୟରେ ଠିକ୍ ଗବପରି ଶସ ଥାଏ, କେବଳ ଆକାର ବଡ଼ ଏବଂ ତାହାର ଶସଟି ମଧ୍ୟ ତୈଳପୂର୍ଣ୍ଣ ।

ବାଇଗବା ଗଛ କେବଳ ବାଉ ସକାଶ ଲଗାଯାଏ, ତାକୁ ଅମର-କଞ୍ଚା କହନ୍ତି, କାରଣ ସେ ସହଜରେ ମରେନାହିଁ ।

ଏହାର ଆଉ ଗୋଟିଏ ବିଶେଷତ୍ୱ ଏହି ଯେ ଏହାର ଡାଳକୁ କାଟି ଲଗାଇଦେଲେ ଚେର ବାହାରି ତାହା ବଞ୍ଚିଯାଏ ଓ ଗଛ ହୁଏ ।

ବର୍ଷାଦିନ ପୂର୍ବରୁ ଯେବେ ଗାତ ଖୋଳି ତହିଁରେ ଗୋବର, ପତ୍ରପତ୍ର ଓ ପାଉଁଶ ଆଦି ଦେଇ ରଖିବ ଏବଂ ଅପରାଏ ଦୁଇଅପରା ବର୍ଷା ହୋଇଗଲାପର ବର୍ଷା ହେଉଥିବା ଦିନରେ ବାଇଗବା ଗଛରୁ ଘରୁ ଘରୁ ଡାଳଗୁଡିଏ କାଟି ଆଣି ସେହି ଗାତରେ ଦେଇ ମୂଳ ପୋତି-ଦେବ ତାହାହେଲେ ଏକମାସ ବା ଦେଢ଼ ମାସ ପରେ ସେଗୁଡିକ ପତ୍ର ଦେଇ ଗଛ ହୋଇଯିବ । ବାଉ ସକାଶ ଏ ଗଛ ବଡ଼ ସୁବିଧାଜନକ ।

ପ୍ରଶ୍ନ

୧ । ଗବଫଳ ଓ ବାଇଗବା ଫଳ ମଧ୍ୟରେ ପାର୍ଥକ୍ୟ କଣ ?

୨ । ଗବପତ୍ର ଓ ବାଇଗବା ପତ୍ର ମଧ୍ୟରେ ପାର୍ଥକ୍ୟ କଣ ?

୩ । ଗବପତ୍ରର ଡେମ୍ଫ ଏବଂ ବାଇଗବା ପତ୍ର ଡେମ୍ଫର ମଧ୍ୟରେ ପାର୍ଥକ୍ୟ କଣ ?

୪ । ଗବଗଛ ବେଶିଦିନ ବଞ୍ଚେ କି ବାଇଗବା ଗଛ ବେଶି ଦିନ ବଞ୍ଚେ ?

୫ । ଗବ ଓ ବାଇଗବା ଲଗାଇବାରେ କିଛି ପାର୍ଥକ୍ୟ ଅଛି କି ?

## (୯) ଗବ ଅଙ୍କୁର

ଉପରେ ଯେଉଁ ଶସ୍ୟଟି କଥା ପଢ଼ିଲ, ସେହି ଶସ୍ୟଟିକୁ ସାବ-ଧାନରେ ଲମ୍ବଦିଗରେ ଚିରିଦେଲେ ଦେଖିବ ତହିଁ ମଧ୍ୟରେ ଦୁଇଟି ଅଲଗାଲଗା ପତ୍ର ସହିତ ଗୁଡ଼ି ସୂକ୍ଷ୍ମ ଶିଶୁଗଛଟି ଅଛି । ମାଟିରେ ପୋତିଲେ ଜଳ ବାୟୁ ଓ ଉତ୍ତାପ ଏହି ତିନୋଟି ପଦାର୍ଥର ସଂଯୋଗରେ ସେହି ଶିଶୁ ବୃକ୍ଷଟି ବଢ଼ିବାକୁ ଆରମ୍ଭ କରେ । ତାର ଚେର ତଳକୁ

ଯାଇ ମାଟିରୁ ରସ ଟାଣେ ଏବଂ କାଣ୍ଡଟି ଉପରକୁ ଉଠି ପତ୍ର ଧାରଣ କରେ । ସବୁ ଗଛମାନଙ୍କ ପରି ଏହାର ପତ୍ର ମଧ୍ଯ ବାୟୁରୁ ଆହାର ଟାଣେ ।

ଗବଗଛର କାଣ୍ଡ ଭିତରଟି ଫୋମ୍ପା । ପତ୍ରର ଡେମ୍ଫଗୁଡିକ ଲମ୍ବ ଲମ୍ବ ଏବଂ ଛନ୍ଦା ର ଭିତରଟି ମଧ୍ଯ ଫୋମ୍ପା ।

ଆମ୍ଭମାନଙ୍କ ଦେଶରେ ଜଡ଼ାତେଲ ଜାଳିବା ପାଇଁ ବ୍ୟବହୃତ ହେଉଥିଲା । ବର୍ତ୍ତମାନ ମଧ୍ଯ କେହି କେହି ଜାଳନ୍ତି, କେହି କେହି ଦେହରେ ଲଗାନ୍ତି, କେତେକ ସ୍ଥାନରେ ଗରିବ ଲୋକମାନେ ତରକାରୀ ରନ୍ଧାନ୍ତି । ଜଡ଼ାତେଲ ନାନା ପ୍ରକାର ଔଷଧରେ ବ୍ୟବହୃତ ହୁଏ ।

ପ୍ରଶ୍ନ

୧ । ଗବଗଛ କେତେବର୍ଷ ବଞ୍ଚେ ?

୨ । ଗବଗଛପରି ଆଉ କେଉଁ ଗଛରେ ଫଳ ପେଣ୍ଡା ପେଣ୍ଡା ହୋଇ ଧରେ ?

୩ । ଗବଗଛର କାଣ୍ଡ ଓ ଆମ୍ବଗଛର କାଣ୍ଡ ମଧ୍ଯରେ ପ୍ରଭେଦ କ'ଣ ?

୪ । ଗବଗଛର ଚେରଗୁଡିକ ଛୁଣ୍ଡାଇଦେଲେ ଫଳ କ'ଣ ହେବ ?

୫ । ଜଡ଼ାତେଲ କିପରି ପ୍ରସ୍ତୁତ କରାଯାଏ ?

୬ । ଜଡ଼ାତେଲ ଓ ସୋରିଷତେଲ ମଧ୍ଯରେ ପ୍ରଭେଦ କ'ଣ ?

୭ । ଜଡ଼ାତେଲ କେଉଁ କେଉଁ ପ୍ରକାରରେ ଜାଳିବାର ଦେଖିଅଛ ?

୮ । ଜଡ଼ାର ଆଉ କି କି ବ୍ୟବହାର ଜାଣ ଉଲ୍ଲେଖ କର ?

## (ଚ) କାଠଚମ୍ପା

ଅମରଜଡ଼ାର ଯେପରି ଡାଳ ପୋତିଲେ ଚେର ବାହାରି ଗଛ ହୁଏ, କାଠଚମ୍ପାର ମଧ୍ଯ ଡାଳ ପୋତିଲେ ସେହିପରି ଚେର ବାହାରି ଗଛ ହୁଏ । ଏହିପରି ଆହୁରି ଅନେକ ପ୍ରକାର ଗଛ ଅଛି ଯାହାର ଡାଳ

ଯୋଡିଲେ ଗଛ ହୁଏ; ଯଥା ମଲ୍ଲୀ, କୁସୁମ, ଯୂଇ, ଟେଜା, ଗୋଲାପ, ସଜନା, ସିଝୁ, ପାଳଧୂଆ ଇତ୍ୟାଦି । ବରଡ଼ାଳ ମଧ୍ୟ ଯୋଡିଲେ ଚେର ବାହାର ଗଛ ହୁଏ ।

କାଠଚମ୍ପାର ଫୁଲ ଧୋବଲା, ଭିତରଟି ହଳଦିଆ, ଗନ୍ଧ ମଧୁର ଏବଂ ସୁନ୍ଦର । କାଠଚମ୍ପା ଫୁଲ ଅଭ୍ୟାସ କରି ବରାବର ସୁଙ୍ଘିଲେ ଚକ୍ଷୁର ଜ୍ୟୋତି ବୃଦ୍ଧି ହୁଏ ।

ଏଣ୍ଡି ପୋକମାନେ ୧୨ ଦିନ ପରେ କଦଳୀ ଗଛପତ୍ର ଖାଆନ୍ତି, ଅନେକଙ୍କର ସେହି ସମୟରେ ଗଛପତ୍ରର ଅଭାବ ହୁଏ । ପୋକଙ୍କ ପାଇଁ ପୁଷ୍ଟିକର ପଦାର୍ଥ ଯଥେଷ୍ଟ ନ ଥିଲେ ସୁଦ୍ଧା ସେମାନଙ୍କର ଜୀବନରକ୍ଷା ସକାଶ ଏହି ସମୟରେ କାଠଚମ୍ପା ପତ୍ର ସେମାନଙ୍କୁ ଖାଇବାକୁ ଦିଆ-ଯାଇପାରେ ।

ଗୋଟିଏ ଚମ୍ପାଫୁଲ ଓ ଆଉ ଗୋଟିଏ କାଠଚମ୍ପା ଫୁଲ ଛାତ୍ରମାନଙ୍କୁ ଦେଖାଇ ପ୍ରଶ୍ନ କର ।

ପ୍ରଶ୍ନ

୧ । ଚମ୍ପାଗଛ ଦେଖିଅଛ ?

୨ । ଚମ୍ପାଫୁଲ ଓ କାଠଚମ୍ପା ଫୁଲ ମଧ୍ୟରେ ପ୍ରଭେଦ କ'ଣ ?

୩ । କାଠଚମ୍ପା କିପରି ଲଗାଯାଏ ?

୪ । କାଠଚମ୍ପା ପରି ଲଗାଯାଉଥିବା ଆଉ ଯେତେ ଗଛ ଜାଣ ସେମାନଙ୍କର ନାମ କହ ।

## (ଛ) ଅମୃତଭଣ୍ଡା

### ( ପପେୟା )

ଅମୃତଭଣ୍ଡା ଗଛ ସମସ୍ତେ ଦେଖିଅଛ । ଏହା ଲମ୍ବ ହୋଇ ଉପରକୁ ଉଠିଯାଏ, ଯେତେ ଉଠୁଥାଏ ତାହାର ପୁରୁଣା ପତ୍ରଗୁଡ଼ିକ ଶୁଖି ଝଡି

ପଡ଼ୁଥାଏ, ଅଟରେ ଗୁଡ଼ାଏ ପନ୍ଧ ରହେ । ଦେ ଡାଳକୁ ଫଳଗୁଡ଼ାଏ ଧରେ । ଏହାର ଫଳ ବାରମାସ ଫଳେ ।

ବୈଶାଖ ବା ଜ୍ୟେଷ୍ଠ ମାସରେ ୨।୩ ଫୁଟ ଗଭୀର ଗାତ ଖୋଳି ତହିଁରେ ପଙ୍କମାଟି ଓ ଗୋବର ପ୍ରଭୃତି ଦେଇ ଛାଡ଼ିଦେବ । ବର୍ଷା ହେଲେ ୨।୩ ଫୁଟର ବଡ଼ ଗଛ ଆଣି ଲଗାଇବ ।

ଗଛ ୬ ଫୁଟ ଉଚ୍ଚ ହୋଇଗଲେ ତାହାର ଅଗ କୁଆଁଟି ଭାଙ୍ଗିଦେବ । ତାହାହେଲେ ଗଛ ଅଧିକ ଉଚ୍ଚକୁ ବଢ଼ି ନ ଯାଇ ମୋଟା ହେବ ଏବଂ ଫଳ ମଧ୍ୟ ବଡ଼ ବଡ଼ ହେବ ।

ଅମୃତଭଣ୍ଡା ଚାଷ କରିବାକୁ ହେଲେ କଅରରେ ୮।୧୦ ଫୁଟ ଛଡ଼ାରେ ଉପରୋକ୍ତ ପ୍ରକାରରେ ଗାତ ଗୋଟିଏ ଖୋଳି ଖତ ଭରି ଛାଡ଼ି ଦେଇଥିବ ।

ଭଲ ମଞ୍ଜି ଖରାରେ ଶୁଖାଇ ରଖିଥିବ । ଗୋଟିଏ ପାଟଆ କମା କିରାସିନି ବାକ୍ସରେ ବାଲିଆ ମାଟି ଓ ଦୁଇବର୍ଷରୁ ଅଧିକ ସମୟ ପଚିଥିବା ପତୁରିଆ ମାଟି ଗୁଡ଼ାଏ ଚୂର୍ଣ୍ଣ କରି ତହିଁରେ ସେହି ମଞ୍ଜି ପକାଇ ତହିଁ ଉପରେ ୧ ଇଞ୍ଚ ବହଳରେ ପତୁରିଆ ମାଟି ଦେଇ ତାକୁ ଧୋଇଡ଼ାଇ ଦେବ । ଗଛ ହୋଇ ୪।୬ ଇଞ୍ଚ ବଡ଼ ହେଲେ ସେଗୁଡ଼ିକ ସାବଧାନରେ ଉଠାଇନେବ । ଅନ୍ୟ ଗୋଟିଏ ଯାଗାରେ ଭଲମାଟି ଓ ତହିଁ ସଙ୍ଗେ ଗୁଡ଼ାଏ ପତୁରିଆ ମାଟି ମିଶାଇ ଗୋଟିଏ ପିଣ୍ଡି ପ୍ରସ୍ତୁତ କରି ରଖିଥିବ । ସେହି ପିଣ୍ଡିରେ ଗଛଗୁଡ଼ିକ ଲଗାଇଦେବ । ସେ ପିଣ୍ଡି ମାଟିକୁ ଏପରି ତିଆର କରିଥିବ ଯେପରି ସେଥିରେ ଗୋଡ଼ି ବା ପଥର କିଛି ନ ଥିବ । ମାଟି ଭଲରୂପେ ଗୁଣ୍ଡା ହୋଇଥିବ । ସେହିଠାରେ ଗଛ ୨।୩ ଫୁଟ ହୋଇଗଲେ ତାକୁ ଉଠାଇନେଇ ପୂର୍ବରୁ ଖୋଳି ରଖିଥିବା ଗାତରେ ଲଗାଇଦେବ ।

ଏଥିରେ ବିଶେଷ କିଛି ପରିଶ୍ରମ ନାହିଁ । ପାଣିର ବିଶେଷ ଲୋଡ଼ା ନାହିଁ । ଫଳ ବହୁତ ଫଳେ । ଅତି ଲାଭଜନକ ଫସଲ ।

ଗୋଟିଏ ଅମୃତଭଣ୍ଡା ଫଳ, ତାହାର ପତ୍ର, ଡେମ୍ଫ ଆଣି ରଖ । ଫଳଟି କାଟି ଛାତ୍ରମାନଙ୍କୁ ଦେଖାଇ ପର୍ଯ୍ୟବେକ୍ଷଣ କରାଅ । ନିମ୍ନଲିଖିତ ପ୍ରଶ୍ନ ଓ ଆଉ କେତୋଟି ପ୍ରଶ୍ନ କରି ତାହାଁର ଉତ୍ତର ଆଦାୟ କର ।

ପ୍ରଶ୍ନ

୧ । ଅମୃତଭଣ୍ଡା କେଉଁ ସମୟରେ ଫଳେ ?

୨ । ଅମୃତଭଣ୍ଡା ଗଛପରି ଆଉ କୌଣସି ଗଛ ଶେଷଭାଗରେ ଏକସ୍ଥାନରେ ଫଳ ଧରିବାର ଦେଖିଅଛ ?

୩ । ଅମୃତଭଣ୍ଡା ଫଳର ଭିତରଟି କିପରି ? ମଞ୍ଜି କେଉଁଠାରେ ଥାଏ ?

## (ଜ) କନ୍ଦମୂଳ

କନ୍ଦମୂଳ ଗୋଟିଏ ଲତାରୁ ହୁଏ । ଦୋରସା ମାଟିରେ କନ୍ଦମୂଳ ଭଲ ଫଳେ । ମାଟି ଶୁଖିଗଲେ ପ୍ରଥମେ ଚାଷ କରି ମାଟି ପ୍ରସ୍ତୁତ କରିଦେବ । ଦେଢ଼ଫୁଟ୍ ବା ଦୁଇଫୁଟ୍ ଲେଖାଏଁ ଛଡ଼ାରେ ହୁଡ଼ା ପ୍ରସ୍ତୁତ କରିବ । ବର୍ଷା ହେଲେ ପୁରୁଣା କନ୍ଦମୂଳ ଲତାଗୁଡ଼ିଏ ଆଣି ୩ ଗୋଟି କରି ଗଣ୍ଠିରଖି ସେ ଗୁଡ଼ି ଖଣ୍ଡ ଖଣ୍ଡ କରି ପକାଇବ । ସେଥିରୁ ଖଣ୍ଡିଏ ଖଣ୍ଡିଏ ତେର୍ଛା କରି ସେହି ହୁଡ଼ାରେ ପ୍ରାୟ ୧ ଫୁଟ ଲେଖାଏଁ ଅନ୍ତରରେ ଲଗାଇଦେବ । କିଛି ଦିନ ପରେ ସେଥିରୁ ନୂତନ ଡାଙ୍କ ଏବଂ ପତ୍ର ବାହାରି ହୁଡ଼ାଯାକ ଡାଙ୍କ ଓ ପତ୍ରରେ ଢାଙ୍କି ହୋଇପଡ଼ିବ ।

ଏଥିରେ ଆଉ କିଛି ପରିଶ୍ରମ କରିବାକୁ ପଡ଼େନାହିଁ । କିନ୍ତୁ ଥରେ ଦୁଇଥର ବାଛିଦେଲେ ଓ ଥରେ ଦୁଇଥର ପାଣିଦେଲେ ଫଳ ବେଶୀ ହେବ । ଭାଦ୍ରବ ବା ଆଶ୍ୱିନ ମାସରେ ଲଗାଇବାକୁ ହୁଏ, ପୌଷ ବା

ମଂଘ ମାହିରେ ଖୋଳିବାକୁ ହୁଏ । ବନ୍ଧନ ସକାଶେ କେତେକ ସିଆର ନ ଖୋଲି ଛାଡ଼ିଦେଲେ ତାହାର ଲଟା ପରବର୍ତ୍ତୀ ଥରକୁ ବନ୍ଧନ ହେବ ।

କନ୍ଦମୂଳ, କନ୍ଦମୂଳ ଲଟା, ଗୋଲଆଳୁ, ଖୁମ୍ବଆଳୁ, ଖୁମ୍ବଆଳୁ ଲଟା, ଆଣି ଛାତ୍ରମାନଙ୍କୁ ଦେଖାଇ ପର୍ଯ୍ୟବେକ୍ଷଣ କରିବାକୁ ଶିକ୍ଷାଦିଅ । ନିମ୍ନଲିଖିତ ପ୍ରଶ୍ନ ଓ ଅନ୍ୟାନ୍ୟ ପ୍ରଶ୍ନ କରି ଉତ୍ତର ଅଦାୟ କର ।

ପ୍ରଶ୍ନ

୧ । କନ୍ଦମୂଳବର ମାଟିମଧ୍ୟରେ ଆଉ ଯେତେପ୍ରକାର ଫଳ ଫଳେ ସେମାନଙ୍କର ନାମ ବୋଲ । ସେମାନଙ୍କୁ କେଉଁ ସମୟରେ ଲଗାଇବାକୁ ହୁଏ ?

୨ । କନ୍ଦମୂଳର ଲଟା ଯେପରି ଲଗାଇବାକୁ ହୁଏ ସେହିପରି ଆଉ କାହାର ଲଟା ଲଗାଇଲେ ଚେର ହୁଏ ?

୩ । ଖୁମ୍ବଆଳୁ ଲଟା ଓ କନ୍ଦମୂଳ ଲଟାର ପ୍ରଭେଦ କଣ ?

## (୪) କୋବି

କୋବି ସମସ୍ତେ ଦେଖିଅଛ । ସାଧାରଣତଃ ବନ୍ଧାକୋବି ବୋଲି ଯାହାକୁ କହୁଁ ତାହାର ବିଷୟ ଏଠାରେ କୁହାଯିବ ।

କୋବି ଗଛରେ ବହୁତ ଯତ୍ନ ଓ ପରିଶ୍ରମ ଆବଶ୍ୟକ । କୋବି ଗଛ ପ୍ରସ୍ତୁତ କରିବାଲାଗି ପ୍ରଥମେ ମାଟି ପ୍ରସ୍ତୁତ କରିବାକୁ ପଡ଼େ । ସେପ୍‌ଟେମ୍ବର ଅକ୍‌ଟୋବର ମାସରୁ ଲଗାଇବାକୁ ହୁଏ । ଗୋଡ଼ି ପଥର ଉତ୍ତମରୂପେ ବାଛି ପିଣ୍ଡି ଟିଏ କରିବ । ମଞ୍ଜି ବୁଣି ତାହା ଉପରେ ୧ଇଞ୍ଚ ମାଟି ଦେଇ ଘୋଡ଼ାଇ ରଖିବ । ମଞ୍ଜି ଗଜା ହୋଇଗଲେ ପୁଣି ଖରା ବର୍ଷାକୁ ଜଗି ବରାବର ଘୋଡ଼ାଇବ । ସମୟ ସମୟରେ ସକାଳର କଅଁଳ ଖରା ଦେବ । ମାଟି

ଶୁଖିଗଲେ ଅଳ୍ପ ପାଣି ଦିଅିବ । ପାଣି ବେଶିହେଲେ ଗଛ ପଚିଯିବ । ଗଛ ୪।୬ ପତ୍ର ହେବା ପର୍ଯ୍ୟନ୍ତ ବରାବର ଏହିପରି ଜଗି ଯତ୍ନ ନେବାକୁ ହେବ ।

ଗଛ ପ୍ରସ୍ତୁତ ହେଲେ ଲଗାଇବା ପକାଶ ଜମି ପ୍ରସ୍ତୁତ କରି ଦେଢ଼-ଫୁଟ୍ ୨ ଫୁଟ୍ ଛଡ଼ାରେ ଗୋଟିଏ ୨ ଧାଡ଼ିରେ ଗଛଗୁଡ଼ିକ ଛଡ଼ା ଛଡ଼ା କରି ଲଗାଇଦେବ । ୭ । ୮ ଦିନ ପର୍ଯ୍ୟନ୍ତ ନୂଆ ଚେର ହେବାଯାଏ ବରାବର ସନ୍ଧ୍ୟା କିମ୍ବା ସକାଳେ ପାଣି ଦେବ ।

ଜମିର ମାଟିକୁ ଉତ୍ତମରୂପେ ଆଗରୁ ପ୍ରସ୍ତୁତ କରିଥିବ । ଗଛ ଟିକିଏ ବଡ଼ହେଲେ ପିଡ଼ିଆ ଓ ଖତ ଦେବାକୁ ହେବ । ପ୍ରତି ଏକରରେ ୨୦୦ ମହଣ ଗୋବର ଖତ ଏବଂ ୫ ଠାରୁ ୧୦ ମହଣ ପିଡ଼ିଆ ଦେବାକୁ ପଡ଼ିବ । ଧାଡ଼ିମାନଙ୍କ ମଧ୍ୟରେ ଥିବା ସ୍ଥାନରେ ପିଆର କରିବ । ପ୍ରତି ସପ୍ତାହରେ ୩ । ୪ ଥର ଲେଖାଁଏ ପାଣି ଦେବ ।

ପଡ଼ିଆ ପଡ଼ିଥିବା ଜମିରେ କୋବି ଭଲ ହେବ । ପଡ଼ିଆ ଜମି ହୋଇଥିଲେ ପ୍ରଥମେ କେତେକ ଥର ବେଶି ପିଡ଼ିଆ ଦେବାର ଅବଶ୍ୟକ ହେବନାହିଁ । ଗଛ ପ୍ରସ୍ତୁତ ହେଲେ ୨ ଖତ ଦେଇ ଉତ୍ତମରୂପେ ହଳ-କରାଇ ଜମିଟି ପ୍ରସ୍ତୁତ ରଖିବାକୁ ହେବ । ଛାଇତଳିଆ ଜମିରେ କୋବି ଭଲ ହେବନାହିଁ । ମେଣ୍ଢାଲଣ୍ଡି କୋବିଗଛକୁ ଭଲ ଉପଯୋଗୀ ଖତ । ତାହା ଅଭାବରେ ସୋରିଷ ପିଡ଼ିଆ ଦିଆଯାଏ । ନହେଲେ ଗୋବର ଖତ ଦେବାକୁ ହେବ ।

ପ୍ରତି ଗଛକୁ ୩ ଥରରେ ସେ ୦୵ ସୋରିଷଖତ ଦରକାର । ପ୍ରତିଥର ଖତ ପରେ ପରେ ପାଣି ଦେବାକୁ ହେବ ।

ଗୋଟିଏ ବନ୍ଧାକୋବି, ଗୋଟିଏ ଫୁଲକୋବି ଓ ସାଲଗମ ପ୍ରଭୃତି ପର୍ଯ୍ୟବେକ୍ଷଣ କରିବାକୁ ଶିକ୍ଷା ଦେବ । ନିମ୍ନଲିଖିତ ପ୍ରଶ୍ନ ଓ ଅନ୍ୟାନ୍ୟ ପ୍ରଶ୍ନଗୁଡ଼ିଏ ପଚାରି ଉତ୍ତର ଆଦାୟ କର ।

## ପ୍ରଶ୍ନ

୧ । କେତେ ପ୍ରକାର କୋବ ଦେଖିଅଛ ?

୨ । କୋବ ଯେଉଁ ସମୟରେ ଲଗେ ସେହି ସମୟରେ ଆଉ କ କ ଫସଲ ଲଗାଯାଏ ? ସେସବୁ କାପଣ ଲଗାଯାଏ କହିପାରିବ ?

୩ । କୋବରେ କପରି ପିଡଆ ଦଆଯାଏ ଦେଖିଅଛ ?



## ଦ୍ୱିତୀୟ ଅଧ୍ୟାୟ—ତୃତୀୟ ଶ୍ରେଣୀ

# (କ) ରେଶମ

ରେଶମର ସାଧାରଣ ନାମ ପାଟ । ପାଟ କେତେକ ଗୁଡ଼ାଏ ପୋକଙ୍କର ପାଟିରୁ ଉତ୍ପନ୍ନ ହୁଏ । ଆମ୍ଭମାନଙ୍କର ଏହି ଭାରତବର୍ଷରେ ଚାରି ପ୍ରକାର ରେଶମ ଉତ୍ପନ୍ନ ହେଉଅଛି; ଯଥା—୧-ମୁଗା, ୨-ପାଟ, ୩-ଏଣ୍ଡି ଓ ୪-ମଠା ।

ଏହି ଭିନ୍ନ ଭିନ୍ନ ଜାତୀୟ ରେଶମ ଭିନ୍ନ ଭିନ୍ନ ଜାତୀୟ ପୋକ ପ୍ରସ୍ତୁତ କରନ୍ତି । ସେମାନେ ଦେଖିବାକୁ ରୂପରେ ଯେପରି ଭିନ୍ନ ଭିନ୍ନ ପ୍ରକାରର ସେମାନଙ୍କର ଆହାରରେ ମଧ୍ୟ ସେହିପରି ପାର୍ଥକ୍ୟ ଅଛି । ସମସ୍ତେ ଗଛର ପତ୍ର ଖାଇ ପ୍ରାଣ ଧାରଣ କରନ୍ତି, ମାତ୍ର ଭିନ୍ନ ଭିନ୍ନ ଜାତିର ପୋକ ଭିନ୍ନ ଭିନ୍ନ ଗଛର ପତ୍ର ଖାଆନ୍ତି ।

ସାଧାରଣତଃ ଆମ୍ଭେମାନେ ଯେଉଁ ରେଶମକୁ ପାଟ ବୋଲି କହୁଁ ତାହା ଯେଉଁ ପୋକ ଦିଅନ୍ତି ସେମାନେ ତୁତ ଗଛର ପତ୍ର ଖାଆନ୍ତି । ତୁତ ଗଛକୁ ମାଲବାରି ମଧ୍ୟ କହନ୍ତି । ଯେଉଁ ପୋକମାନେ ଟସର ଦିଅନ୍ତି ସେମାନେ ବରକୋଳି, ଅସନ, ଅର୍ଜ୍ଜୁନ ପ୍ରଭୃତି ଗଛର ପତ୍ର-ଖାଆନ୍ତି । ଯେଉଁ ପୋକ ମୁଗା ଦିଅନ୍ତି ସେମାନେ ସୋମଗଛ ବୋଲି ଏକପ୍ରକାର ଗଛ ଅଛି ସେହି ଗଛର ପତ୍ର ଖାଆନ୍ତି । ଯେଉଁ ପୋକ ଏଣ୍ଡି ରେଶମ ଦିଅନ୍ତି ସେମାନଙ୍କର ପ୍ରଧାନ ଖାଦ୍ୟ ଜଡ଼ାପତ୍ର । ଜଡ଼ାକୁ ସଂସ୍କୃତରେ ଏରଣ୍ଡ ବୋଲାଯାଏ । ଏହି ପୋକଙ୍କର ପ୍ରଧାନ ଆହାର ଏରଣ୍ଡ ପତ୍ର । ତେଣୁ ଏମାନଙ୍କର ନାମ "ଏରଣ୍ଡ"ର ଅପଭ୍ରଂଶରୁ ଏଣ୍ଡି ହୋଇଥିବାର ଅନୁମାନ କରାଯାଏ ।

## (ଗ) ଏଣ୍ଡି ରେଶମ

ଯେଉଁ ସବୁ ପ୍ରକାର ରେଶମ କଥା ପଢ଼ିଅଛୁ ସେମାନଙ୍କ ମଧ୍ୟରେ ମୁଗା ସବୁଠାରୁ ଉତ୍କୃଷ୍ଟ ପାଟ, ଅର୍ଥାତ୍ ତୁତପତ୍ର ଖାଉଥିବା ପୋକ ଯେଉଁ ରେଶମ ଦିଅନ୍ତି ତାହା ମଧ୍ୟ ଏଣ୍ଡିଠାରୁ କେତେକ ଗୁଣରେ ସରସ । ତଥାପି ଏଣ୍ଡି ଖୁବ୍‌ଟାଣ, ଗରମ ଏବଂ ଦେହକୁ ନରମ ଲାଗେ। ଏହି ହେତୁରୁ ଅନେକ ଲୋକ ଏଣ୍ଡି ଚଦର ବ୍ୟବହାର କରନ୍ତି ଏବଂ ଜାମା ଓ ପୋଷାକ ନିମନ୍ତେ ଏଣ୍ଡି କପଡ଼ା ପସନ୍ଦ କରନ୍ତି ।

ଏଣ୍ଡି ଯାଠଲୁଗା ଭାରି ସରସ
ବାଡ଼େଇ କଚୁଡ଼ି ନିତି ପିନ୍ଧୁଥାଅ
ତେବେ ମାରଯିବ ତେରବରଷ ।
ଏଣ୍ଡି କପଡ଼ାର ଅସୀମ ଗୁଣ
ଦେହକୁ ନରମ ଶୀତକୁ ଗରମ
ଖରାଦିନେ ଥଣ୍ଡା ରଖିବ ପୁଣ ।

ଅନ୍ୟ ଜାତିର ରେଶମର ସୂତା ବାହାର କରିବା କାରଣ ପୋକ-ଗୁଡ଼ିକଙ୍କୁ ମାରିଦେବାକୁ ପଡ଼େ, ମାତ୍ର ଏଣ୍ଡି ପୋକଙ୍କୁ ମାରିବାକୁ ପଡ଼େନାହିଁ । ଅନ୍ୟ ରେଶମର କୋଷାଗୁଡ଼ିକରୁ ଗୋଟିଏ ଖିଅ ବାହାରେ । ତେଣୁ କୋଷା ମଧ୍ୟରେ ପୋକ ଜୀବିତ ଥିବା ଅବସ୍ଥାରେ ତାହାକୁ ଗରମ ଜଳରେ ପକାଇ ସେହି ଖିଅଟି ଧରି ଟାଣିବାକୁ ପଡ଼େ । ଟାଣିଲେ ଖିଅଟି ବାହାରିଯାଏ । ତାହା ନ କଲେ ପୋକ ପ୍ରଜାପତି ହୋଇ କୋଷାକୁ କାଟି ବାହାରିଆସେ । କୋଷା କଟିଗଲେ ସୂତା ବାହାରେନାହିଁ, ତେଣୁ ପୋକଙ୍କୁ ମାରିଦେବାର ଆବଶ୍ୟକ ହୁଏ ।

ଏଣ୍ଡି କୋଷାରୁ ସେପରି ଖିଅ ବାହାରେନାହିଁ । ତେଣୁ ପୋକ ପ୍ରଜାପତି ହୋଇ କୋଷାକୁ କାଟିଦେଲେ ମଧ୍ୟ କିଛି କ୍ଷତି ହୁଏନାହିଁ ।

ସବୁ ରେଶମର ପୋକ କୋଷାକରି କୋଷା ମଧ୍ୟରେ କେତେକ କାଳ ବନ୍ଦହୋଇ ରହନ୍ତି । ତହିଁରେ ପ୍ରଜାପତି ହୋଇ ବାହାରିଆସନ୍ତି । ଏଣ୍ଡି ରେଶମରେ ମଧ୍ୟ ସେହିପରି ପ୍ରଜାପତି ହୋଇ ବାହାରି ଆସନ୍ତି । ତହିଁପରେ ଖାଲି କୋଷାଗୁଡିକୁ ସିଝାଇ ତାହାକୁ ଅରଟରେ କପାସୂତା କାଟିଲାପରି ସୂତା କାଟିବାକୁ ହୁଏ ।

## (ଗ) ଏଣ୍ଡିପୋକ

ଏଣ୍ଡି ପୋକ ବଡ଼ ନିରୀହ ପ୍ରାଣୀ । ସେମାନେ କାହାର କିଛି ଅନିଷ୍ଟ କରନ୍ତିନାହିଁ, କାହାରିକୁ କାମୁଡ଼ନ୍ତିନାହିଁ । ସେମାନଙ୍କ ଦେହରେ ସଂବାଳୁଆପରି କୌଣସି ଲୋମ ନାହିଁ କିମ୍ବା ମୁହଁରେ ସିଙ୍ଗ ବି ନାହିଁ । ତେଣୁ ସେମାନଙ୍କୁ ପୋଷିଲେ କାହାରି କିଛି ଅନିଷ୍ଟ ହେବାର ଭୟ ନାହିଁ ।

ଏଣ୍ଡି ପୋକଙ୍କର ୪ ଗୋଟି ଅବସ୍ଥା; ଯଥା— ୧-ଅଣ୍ଡା, ୨-ପୋକ, ୩-କୋଷା, ୪-ପ୍ରଜାପତି ।

ଅଣ୍ଡା ଫୁଟି ପୋକ ବାହାରନ୍ତି । ଶୀତକାଳ ଛଡା ଅନ୍ୟ ସବୁଦିନେ ପୋକଗୁଡ଼ିକ ୧୮ ଦିନ ପର୍ଯ୍ୟନ୍ତ ଗବପତ୍ର ଖାଇ ବଢ଼ନ୍ତି । ୧୮ଦିନରେ ଖାଇବା ବନ୍ଦକରି କୋଷା ବୁଣି ସେହି କୋଷା ମଧ୍ୟରେ ରହନ୍ତି । ଶୀତ କାଳଛଡା ଆଉ ସବୁ କାଳରେ କୋଷାମଧ୍ୟରେ ୧୮ଦିନ ବନ୍ଦ ରହନ୍ତି । ତହିଁପରେ ପ୍ରଜାପତି ହୋଇ ବାହାରନ୍ତି । ମାଈ ପ୍ରଜାପତି ଅଣ୍ଡା-ଦିଅନ୍ତି । ତହିଁପରେ ଆପେ ଆପେ ମରିଯାନ୍ତି । ଅଣ୍ଡିରା ପ୍ରଜାପତିଗୁଡ଼ିକ ମଧ୍ୟ ସେହିପରି ମରିଯାନ୍ତି ।

## (ଘ) ଏଣ୍ଡିପୋକଙ୍କର ଆହାର

ଗବପତ୍ର ଏଣ୍ଡିପୋକଙ୍କର ଏକମାତ୍ର ଆହାର ଅଟେ । ପୋକ ବଡ଼ ହୋଇଗଲେ, ଅର୍ଥାତ୍ ଦି ୧୨ ନର ହେବାପର ଯେବେ ଗବପତ୍ର

ନିତାନ୍ତ ଅଭାବ ହୁଏ ତେବେ ଅମୃତଭଣ୍ଡା (ପପେୟା) ପତ୍ର, କୋବି-ପତ୍ର, କାଠଚମ୍ପାପତ୍ର, କନ୍ଦମୂଳପତ୍ର, ବା କଅଁଳିଆ କଦଳୀପତ୍ର ମଧ୍ୟ ଦେଲେ ସେମାନେ ଖାଇବେ। ଏହିରୁ ପତ୍ରଦ୍ୱାରା ସେମାନଙ୍କର ଜୀବନ ରକ୍ଷା ହୋଇପାରିବ, ମାତ୍ର ଏଥିରେ ସେମାନଙ୍କ ସକାଶ ପୁଷ୍ଟିକର ପଦାର୍ଥ କିଛି ନାହିଁ।

ଆସାମ ଅଞ୍ଚଳରେ କେସାରୁ ନାମକ ଏକପ୍ରକାର ଗଛ ହୁଏ ଓ ସେଠାରେ ଏଣ୍ଡି ପୋକଙ୍କୁ କେସାରୁପତ୍ର ଖାଇବାକୁ ଦିଅନ୍ତି। ମାତ୍ର କେସାରୁ ଗଛ ଏ ଅଞ୍ଚଳରେ ହୁଏନାହିଁ।

ଏଣ୍ଡି ପୋକଙ୍କୁ ୧ମ ଦିନ ଖୁବ୍ କଅଁଳ ଗବପତ୍ର ଦେବାକୁ ହେବ, କ୍ରମେ ପୋକ ଯେତେ ବଡ ହେଉଥିବେ କ୍ରମେ ତେତେ ବଡ଼ ଗବପତ୍ର ଦେବାକୁ ହେବ। ଛୋଟ ପୋକଙ୍କୁ ପାକଲପତ୍ର ଦେବନାହିଁ ଓ ବଡ଼ ପୋକଙ୍କୁ କଅଁଳ ପତ୍ର ଦେବନାହିଁ, ଗଛରୁ ପତ୍ର ତୋଳିଆଣି ସଙ୍ଗେ ସଙ୍ଗେ ପୋକଙ୍କୁ ଦେଲେ ଅତି ଉତ୍ତମ ହେବ। ମାତ୍ର ନିଜ ବାଡିରେ ଓ ଅତି ନିକଟରେ ଗବଗଛ ନ ଥିଲେ ଏ ସୁବିଧା ହୋଇନପାରେ, ତେବେ ଯେଉଁଦିନ ପତ୍ର ତୋଳାହେବ ସେହିଦିନ ଖାଇବାକୁ ଦେଲେ କିଛି କ୍ଷତି ହେବନାହିଁ। ଥରେ ପତ୍ର ତୋଳିଆଣି ତହିଁ ଉପରେ ଓଦାକନା ପକାଇ ରଖିଲେ ୨୦ । ୨୨ ଘଣ୍ଟା ପର୍ଯ୍ୟନ୍ତ ଚଳିପାରିବ। ପ୍ରତିଦିନ ସକାଳେ ଓ ସନ୍ଧ୍ୟା ସମୟରେ ପତ୍ର ତୋଳିଆଣି ରଖିଲେ ବିଶେଷ ସୁବିଧା। ଗବପତ୍ରରେ ପାଣି ବା କାକର ଲାଗିଥିବା ଅବସ୍ଥାରେ ପୋକଙ୍କୁ ଦେବନାହିଁ। ପାଣି ବା କାକର ଶୁଖିଗଲାପରେ ଦେବ। ପାଚିଲା, ପଚିଲା ବା ଶୁଖିଲାପତ୍ର ପୋକଙ୍କୁ ଦେବା ଉଚିତ ନୁହେ। ପତ୍ରରେ କାଦୁଅ ବା ଧୂଳି ଲାଗିଥିଲେ ତାହା ଉତ୍ତମରୂପେ ଧୋଇ ପରିଷ୍କାରକରି ପାଣି ଶୁଖି-ଗଲେ ଖାଇବାକୁ ଦେବ। ପୋକଙ୍କର ପ୍ରଥମ ଅବସ୍ଥାରେ ଅତି ଅଳ୍ପ ପତ୍ର ଆବଶ୍ୟକ ହେବ। କ୍ରମେ ପୋକ ଯେତେ ବଢ଼ୁଥିବେ ପତ୍ର ମଧ୍ୟ ଅଧିକ

ଲୋଡ଼ା ହେଉଥିବ । ୧୨ ଦିନଠାରୁ ଦିନ୍ଦୁପରିମାଣ ପତ୍ରର ଆବଶ୍ୟକ ହେବ ।

ପ୍ରଥମ ଦିନରେ ୧୬ ହଜାର ପୋକଙ୍କ ସକାଳ ସକାଳ ଓ ସନ୍ଧ୍ୟା ଦୁଇବେଳାରେ ୩ ତୋଳା ଓଜନର କଅଁଳ ପତ୍ର ଯଥେଷ୍ଟ ହେବ । ୨ୟ ଦିନରେ ସେ ୦୮/ ପତ୍ର ଆବଶ୍ୟକ । ୩ୟ ଦିନରେ ୪ ଥର ପତ୍ର ଦେବାକୁ ହେବ । ସକାଳ ୫ ଟାରେ ଓ ୧୦ ଟାରେ ଦୁଇଥରରେ ସେ ୦ ।/୧୦ ଓଜନର ପତ୍ର ଆବଶ୍ୟକ । ଏଦିନ ଅନେକ ପୋକ ଆହାର ବନ୍ଦ କରିବେ । ଉପରବେଳା ୫ ଟା ଓ ରାତ୍ରି ୯ ଟା ଏରୂପ ଦୁଇଥରରେ ୫ ତୋଳା ଓଜନର ପତ୍ର ଲାଗିବ । ଏହାପର ଯେତେ ପତ୍ର ଖାଇବେ ତେତେ ପତ୍ର ଦେବାକୁ ହେବ ।

କ୍ରମେ ପତ୍ରର ପରିମାଣ ବଢୁଥିବ । ୧୩ଶ ଦିନକୁ ସକାଳ ଉପର ବେଳା ଓ ରାତ୍ରି ପର୍ଯ୍ୟନ୍ତ ପ୍ରାୟ ୩- ସେର ପତ୍ର ଆବଶ୍ୟକ । ୧୭ଶ ଦିନକୁ ପ୍ରାୟ ସେ୬୫୫ ପତ୍ର ଆବଶ୍ୟକ । ୧୮ଶ ଦିନକୁ ପାକଳ ହେବାକୁ ଆରମ୍ଭ କରିବେ, ପତ୍ରର ପରିମାଣ କମିଯିବ ।

ପୋକମାନେ ୩ୟ, ୫ମ, ୮ମ ଓ ୧୧ଶ ଦିନ ମାନଙ୍କରେ ଆହାର ବନ୍ଦ କରିବେ । ଯେତେବେଳେ ସେମାନେ ନିଷ୍ଚଳ ହୋଇ ପଡି ରହି-ଥିବେ ତେତେବେଳେ ପତ୍ର ଦିଆଯିବନାହିଁ । ଉପରେ ୧୬ ହଜାର ପୋକଙ୍କର ଆହାର ସମ୍ବନ୍ଧେ ଗୋଟାଏ ମୋଟାମୋଟି ପରିମାଣ ଦିଆଗଲା, ଇହାଁରୁ ଅନ୍ୟ ଦିନମାନଙ୍କର ପତ୍ରର ପରିମାଣ ସହଜରେ ଅନୁମାନ କରି ହେବ । ବାଳକ, ବାଳିକା, ସ୍ତ୍ରୀ, ବୃଦ୍ଧ ଓ ଯୁବକ ସମସ୍ତେ ଏଣ୍ଡି ପୋକ ପୋଷିପାରିବେ । ଏଣ୍ଡି ପୋକଙ୍କୁ ପତ୍ର ଖୋଇବାକୁ ଓ ଡାଳ ଝାଡିବାକୁ ବିଶେଷତଃ ବାଳକ ବାଳିକାମାନଙ୍କୁ ଅତି କୌତୂହଳଜନକ ବୋଧ ହୁଏ । ପୋକମାନଙ୍କର ସ୍ୱଭାବରୁ ସେମାନେ ଅନେକ ବିଷୟ ଶିକ୍ଷା କରିପାରିବେ ।

## (ଙ) ଉପକରଣ

ଏଣ୍ଡି ପୋକ ପୋଷିବା ଲାଗି କେତେକ ଗୁଡ଼ିଏ ଡାଲା, ଗୋଟି-କେତେ ଟୋକେଇ, ଗୋଟିଏ ଗୃହପାହୁଆ ଏବଂ ଗୁଡ଼ିଏ ଅନୁଷଙ୍ଗ ଆବଶ୍ୟକ ।



ପୋକ ଡାଲାରେ ରଖି ପାଳିବାକୁ ହୁଏ । ପୋକ ଯେତେ ବଡ଼-ହେବେ ସେତେ ବେଶି ଡାଲା ଆବଶ୍ୟକ । ପ୍ରଥମ ଦଳର ପୋକ ଗୋଟିଏ ୭ ବର୍ଗଫୁଟ ଡାଲାରେ ୧୭ ହଜାର ପର୍ଯ୍ୟନ୍ତ ରହିପାରିବେ । କ୍ରମେ

ପୋକ ଯେତେ ବଡ଼ହେବେ ସେତେ ଡାଲର ପରିମାଣ ବଢ଼ାଇବାକୁ ହେବ । ପୋକ ବଡ଼ ହୋଇଗଲେ ଗୋଟିଏ ୬ ବର୍ଗଫୁଟ ଡାଲରେ ୩୦୦ରୁ ବେଶି ପୋକ ରହିପାରିବେନାହିଁ । ଅଳ୍ପ ସ୍ଥାନରେ ବେଶି ପୋକ ରଖିଲେ ପୋକଗୁଡ଼ିକ ଦୁର୍ବଳ ହୋଇଯିବେ, ସ୍ଥାନ ଅଭାବରୁ ବଢ଼ିପାରିବେନାହିଁ ମଧ୍ୟ ଭଗ୍ନ ହେବେ

ଡାଲର ପରିମାଣ ବଢିଲେ ଅଳ୍ପ ସ୍ଥାନରେ ବେଶି ଡାଳ ରଖିବାର ସୁବିଧା ନିମନ୍ତେ କାଠ କିମ୍ବା ବାଉଁଶର ଚୌପାହିଆ ବା ଘୋଡ଼ିଆ ତିଆର କରିବା ଆବଶ୍ୟକ । ସେହି ଘୋଡ଼ିଆରେ କେତେକ ଗୁଡିଏ ଥାକ କରିଦେଲେ ଗୋଟିଏ ଘୋଡ଼ିଆରେ ଅନେକଗୁଡ଼ିଏ ଡାଳ ରହିପାରିବ । ତଳରେ ଦେଖ, ଚିତ୍ରରେ ବୁଝି ପାରିବ ।

ଡାଳ ବେଶୀ ଯୋଗାଇ ନ ପାରିଲେ ବଡ଼ ପୋକଙ୍କ ସକାଶେ ଘୋଡ଼ିଆର ପ୍ରତି ଥାକରେ ଖଣ୍ଡିଏ ଲେଖାଏଁ ନଡ଼ିଆ ପତ୍ରର ଛପା ରଖି-ଦେଇ ତହିଁ ଉପରେ ପୋକ ଛାଡ଼ିଦେଲେ ଅନେକ ପୋକ ରହି-ପାରିବେ । ଭଙ୍ଗାମୁଗୁରା, ଚକ୍ ପ୍ରଭୃତିର ଅଂଶ ଏଥିସକାଶ ବ୍ୟବହାର କରିପାର ।

ପୋକ ପାକଳ ହେଲେ ଅର୍ଥାତ୍ ସେମାନଙ୍କର କୋଷା ଦେବାର ସମୟ ହେଲେ ଗୋଟିଏ ଠୋକେଇରେ ଦରଶୁଖିଲା ଆମ୍ବପତ୍ର ଗୁଡିଏ ପୂର୍ତ୍ତିକରି ପୋକମାନଙ୍କୁ ତହିଁ ମଧ୍ୟରେ ଛାଡ଼ିଦେବାକୁ ହେବ । ସେମାନେ ସେହି ଆମ୍ବ ପତ୍ରରେ କୋଷା ବାନ୍ଧିବେ ।

କୋଷା ପାଡ଼ିବା ବିଷୟ ପରେ ବିଶଦରୂପେ ବର୍ଣ୍ଣିତହେବ ।



# ହାତ-କାମ

୨ୟ ଓ ୩ୟ ଶ୍ରେଣୀର ଛାତ୍ରମାନଙ୍କ ନିମନ୍ତେ ହାତକାମ ଓ ପର୍ଯ୍ୟବେକ୍ଷଣ କାର୍ଯ୍ୟର ତାଲିକା ନିମ୍ନରେ ପ୍ରକାଶିତ ହେଲା । ଶିକ୍ଷକ ମହାଶୟ ଛାତ୍ରମାନଙ୍କର ଜ୍ଞାନ ଓ ଶକ୍ତି ଅନୁଯାୟୀ ତାହା କାର୍ଯ୍ୟରେ ପରିଣତ କରିବା ନିମନ୍ତେ ଯତ୍ନ କରିବେ :—

୧ । ଶିକ୍ଷକ ପ୍ରତ୍ୟେକ ଛାତ୍ରକୁ ଗୋ ୪ ଟି ମାଟି ପଲମ ବା ସରା ଆଣିବାକୁ କହିବେ । ତତ୍ପରେ ଗୋଟିଏ ସରାରେ ମାଟି ରଖି ସେଥିରେ ଗୋଟିଏ ଗଡମଞ୍ଜି ପୋତିବାକୁ କହିବେ । ୨ୟ ସରାରେ ଖାଲି ପାଣି ରଖି ସେଥିରେ ଗୋଟିଏ ଗଡମଞ୍ଜି ପକାଇଦେବାକୁ କହିବେ । ୩ୟ ସରାରେ ମାଟି ଦେଇ, ସେଥିରେ ଗୋଟିଏ ଗଡମଞ୍ଜି ପୋତି ଦେବାକୁ ଓ ସେଥିରେ ଟିକିଏ ପାଣି ଛିଞ୍ଚି ଦେବାକୁ କହିବେ । ୪ର୍ଥ ସରାରେ ମାଟି ଓ ପାଣି ଦେଇ ଗୋଟିଏ ମଞ୍ଜି ପୋତି ଦେଇ ସରା ଉପରେ ଗୋଟିଏ ହାଣ୍ଡି ଢାଙ୍କିଦେବାକୁ କହିବେ ।

ଦିନ ୭ ନ ପର୍ଯ୍ୟନ୍ତ ପ୍ରତ୍ୟେକ ଦିନ ସକାଳ ଓ ସନ୍ଧ୍ୟାବେଳ ଛାତ୍ରମାନେ ପ୍ରତ୍ୟେକ ସରାର କାର୍ଯ୍ୟ ପର୍ଯ୍ୟବେକ୍ଷଣ କରି ନୋଟ୍ ଲେଖିବେ ।

୨ । ସ୍କୁଲ ଉଦ୍ୟାନରେ ଥିବା ଗୋ ୪ ଟି ବୃକ୍ଷ, ଲତା ବା ଗୁଳ୍ମ ଶିକ୍ଷକ ବାଛିନେବେ । ପ୍ରତ୍ୟେକ ଗଛର ଡାହାଣ ପାଖରେ ଖଣ୍ଡେ ଲମ୍ବା ବତା ବା ବାଉଁଶ ପୋତିଦେବେ । ଗଛ, ଲତା ବା ଗୁଳ୍ମର ମୂଳରୁ ଶେଷ ପର୍ଯ୍ୟନ୍ତ ବାଉଁଶ ସହିତ ବାନ୍ଧିଦେବେ ।

ଏକମାସ ପର୍ଯ୍ୟନ୍ତ ଛାତ୍ରମାନଙ୍କୁ ଏହାର ବୃଦ୍ଧି ବା ହ୍ରାସ ପ୍ରତ୍ୟେକ ସପ୍ତାହରେ ଥରେ ବା ଦୁଇଥର ଲକ୍ଷ କରିବାକୁ କହିବେ । ସପ୍ତାହ

ମଧ୍ୟରେ ବୃକ୍ଷ, ଲତା ବା ଗୁଳ୍ମ କେତେ ବଢ଼ିଛି, ତାହା ବଡ଼ା ବା ତାଉଁଶରେ ଦାଗ ଦେଇ ମାପିବାକୁ କହିବେ ।

ପ୍ରତ୍ୟେକ ସପ୍ତାହର ପର୍ଯ୍ୟବେକ୍ଷଣ ଛାତ୍ରମାନେ ନୋଟ୍ କରି ତାଲିକା ଫାରମରେ ପୂରଣକରିବେ ।

୩ । ଗଛର ରସ ଗ୍ରହଣ ସମ୍ବନ୍ଧରେ ପରୀକ୍ଷା ଇତ୍ୟାଦି—

---

୧ । ଗୋଟିଏ ଚଉଡ଼ା ମୁହାଁ ବୋତଲରେ ଅଧେ ପାଣି ରଖି ସେଥିରେ ଗୋଟିଏ ପିଆଜ ରଖିଦିଅ । କିଛି ଦିନ ପରେ ପିଆଜ ଗଛର ଚେର ଓ କାଣ୍ଡର ବୃଦ୍ଧି ଲକ୍ଷ କର ।

୨ । ମାଟିରେ ପିଆଜ, ପିଆଜ ଗଛର ଚେର, କାଣ୍ଡ, ପତ୍ର, ଶଣ୍ଢା ଗଢ଼ ।

୩ । ଖଣ୍ଡେ ଭିଜା କନାରେ କିଛି ସୋରିଷ ରଖି ତାହାର ଗଜା, ପତ୍ର, ଚେର ଲକ୍ଷକର ।

୪ । ମାଟିରେ ଗୋଟିଏ ମୂଳା ଗଛ ଗଢ଼ ।

୫ । କେତେକଗୁଡ଼ିଏ ଲତାର ନାମ କହ, ଯେଉଁମାନେ ଡାହାଣରୁ ବାଆଁକୁ ଲଟିଯାନ୍ତି ଓ ଯେଉଁମାନେ ବାଆଁରୁ ଡାହାଣକୁ ଲଟିଯାନ୍ତି ।

୬ । ଯେଉଁ ଲତାଗୁଡ଼ିକ ବାଆଁରୁ ଡାହାଣକୁ ଲଟନ୍ତି, ଯଦି ସେମାନଙ୍କୁ ଆମ୍ଭେମାନେ ଯୋର କରି ଡାହାଣରୁ ବାଆଁକୁ ଲଟାଇବା ତାହାହେଲେ ସେମାନଙ୍କର ବୃଦ୍ଧି ପକ୍ଷେ ବାଧା ହେବ କି ନାହିଁ ତାହା ଲକ୍ଷକର ।

---

୧ । ଏସ୍ତୃ ଶ୍ରେଣୀର ଛାତ୍ରମାନେ ପ୍ରତିଦିନ ଗଚପତ୍ର ଆଣିବେ । ତାହା-
ଗୁଡ଼ିକ ପରିଷ୍କାର କରିବେ, ତାହାରେ ପତ୍ର ପକାଇ ପୋକ ଗୁଡ଼ିକ
ସେଥିରେ ଲାଗିଲେ ତହିଁରୁ ଅନ୍ୟ ଡାଲାକୁ ସ୍ଥାନାନ୍ତରିତ କରିବେ ।

୨ । ଛାତ୍ରମାନେ ନଡ଼ିଆପତ୍ରର ଘୁଣ୍ଟି, ତାଳପତ୍ରର ଡାଲା, ଯାହା କି
ପୋକ ରଖିବା ପକ୍ଷେ ଉପଯୋଗୀ ହେବ ତାହା ବୁଣିବେ ।

୩ । ବାଉଁଶର ଯୋଡ଼ିଆ ପ୍ରସ୍ତୁତ କରିବେ ।

୪ ପୋକମାନଙ୍କର କ୍ରମଶଃ ବୃଦ୍ଧି ଲକ୍ଷକରିବେ ।



Printed by S. C. De at the Cuttack Printing Co. Ld.